


# ରଚନା: ଲଲାଟେନ୍ଦୁ

# କବି

## ପ୍ରେମଫୁଲ - [ଭାଗ-୧]

କେଉଁ ଦେଶେ ଯିବୁ ପକ୍ଷୀ
ଟିକି ଟିକି ଡେଣା ମେଲି;
ଘେନି ଯା ସନ୍ଦେଶ ମୋର,
ଚିଟାଉ ତୋ ହାତେ ଦେଇ ||୦||

ଯେ' ଆକାଶେ ଫୁଟେ ନିତି
ଜାତି ଜାତି ପ୍ରେମ-ଫୁଲ;
ସେ ଦେଶେ ଯାଇଛି ସାଥୀ
ଖୋଜି ପ୍ରେମ-ଫୁଲ ମାଳ ||

ସେ ଫୁଲ ଗୋଟିଏ ପାଇଁ
ଅଝଟ ଯେ କରି ଦେଲି;
ଯାଇଛି ଅବୁଝା ସାଥୀ
ହାତେ ଧରି ଫୁଲ ଥଳୀ ||-୧

ପଦ୍ମ ମଧ୍ୟେ ପଦ୍ମ ଆନ:
ପ୍ରେମ-ଫୁଲ ମନଜିଣା;
ଦେଖିନି କେ' ଶୁଣେ କାନ
ସେ କଥା କି ତାକୁ ଜଣା !!

ପ୍ରେମ ଭୋଳେ କହି ଦେଲି
ସେ ଫୁଲ ଆଣି ଦେ ବୋଲି,
ବୁଝିଲାନି ଥଟା ମଜା,
ଯାଇଛି ସେ ଫୁଲ ତୋଳି || -୨

ଜହ୍ନ ମଧ୍ୟେ ଜହ୍ନ ପରି
ସେ ଫୁଲ ପାଖୁଡ଼ା ଦିଶେ,
ମିଳେ ନା ତ ସରଗରେ;
ମିଳିବ କି ପ୍ରେମ-ଦେଶେ ||

ସାରା ରାତି ଲେଖିଛି ରେ
ଲେଖିଛି ରକତ ଢାଳି ,
ଘେନି ଯା ସନ୍ଦେଶ ମୋର,
ଚିଟାଉ ତୋ ହାତେ ଦେଲି || -୩

ଜଳରେ ଅନଳ ଶିଖା
ପରି ଝଳେ ତା କେଶର,
ନାହିଁ ତିନି ଲୋକେ ଦେଖା
ସେହି ପ୍ରେମ-ଫୁଲ ମୋର ||

ସାଥୀ ମୋର ଗଲା ଦୂରେ
ସେ ଫୁଲ ଆଣିବ ତୋଳି
କାନ୍ଦି କାନ୍ଦି ଅନ୍ଧକାରେ
ଭାଳେ ମୁଁ ଗୋ ଏକି କଲି || -୪

ଲଲାଟେନ୍ଦୁ କବି

# ପ୍ରେମ-ଫୁଲ [ଭାଗ-୨]

ଶାଖୀ ଚୂଳେ ଶାଖା କୋଳେ
ପକ୍ଷୀ ଢାଳେ ଆଖି-ଜଳ;
ମଥିତ 'ନଥିଲା' ଫୁଲେ,
ଫେରୁନି ପ୍ରେମ-ପାଗଳ || ୦ ||

ଖୋଜି ବୁଲେ ବନ ଗିରି
ଅଚଳ ଶିଖରୀ  ଚୂଳ;
ଶୀତଳା ପାତାଳପୁରି
ଆକାଶ ବତାସ ଜଳ ||

ବ୍ୟଥିତ ଉପ୍ତ କହେ –
ବିଧାତା ହେ ଏ କି କଲ;
ପ୍ରେମରେ ବିରହ ଦାହେ
ଯଉବନ ଜାଳି ଦେଲ ||   -୫

ପାରିଲେନି କହି କେହି
ତରୁ ଲତା ଡାଳ ମୂଳ:
କେବେ ଫୁଟେ, କେବେ ନାହିଁ,
ଝଡ଼େ କେବେ ପ୍ରେମ-ଫୁଲ ||

ଭରି ସେ  ଅବୁଝା ସାଥୀ
ନୟନେ ପର୍ଜନ୍ୟ ଜଳ
ଫେରିବନି ମଥା ପୋତି,
ଧରି ଶୂନ୍ୟ ପ୍ରେମ-ଥାଳ ||  -୬

ଆହାର ବିହୁନେ ତନୁ
କୃଶ କଟୀ କରମୂଳ,
ରାତି ରାତି ନାହିଁ ରତି,
ନାହିଁ ଅନ୍ନ, ନାହିଁ ଜଳ ||

ପକ୍ଷୀ ଭାଳେ ପ୍ରୀତି ଖେଳ
ସର୍ବ-ଗହନ-ବିଶାଳ;
ନଭତଳ କି ଉତ୍ତାଳ,
କି ଅତଳ ସିନ୍ଧୁ-ଜଳ ??  -୭

ଲଲାଟେନ୍ଦୁ କବି

ଶବ୍ଦାର୍ଥ:- ଶାଖୀ= ଶାଖାଧାରୀ, ଗଛ; ମଥିତ= ଆନ୍ଦୋଳିତ, ଆତୁର; ଗିରି= ପାହାଡ଼; ଶିଖରୀ= ପର୍ବତ; ଶୀତଳା= ବାଲି-ଭୂଇଁ; ଉପ୍ତ= ଚଢ଼େଇ; ଦାହ= ନିଆଁ, ଜ୍ୱର, ଜ୍ୱଳନ, ଉତ୍ତାପ; ପର୍ଜନ୍ୟ= ବର୍ଷା; ତନୁ= ଦେହ; କୃଶ=କ୍ଷୀଣ, ପତଳା; ସର୍ବ-ଗହନ-ବିଶାଳ= ସବୁଠୁ ଗଭୀର ଓ ବୃହଦାକାର; ଉତ୍ତାଳ= ଉଚ୍ଚ, ଡେଙ୍ଗା; ଅତଳ= ଗଭୀର, ଯାହାର ତଳ ମିଳେ ନାହିଁ

# ପ୍ରେମ-ଫୁଲ [ଭାଗ-୩]

ଯୋଗୀ ପଢ଼େ – "ଭୋଗୀ ଆରେ !
ସେ ଫୁଲ ଅମୂଲ-ମୂଲ !
ପ୍ରେମ-ଦେଶେ ସୋମ-ନୀରେ
ଫୁଟେ ସେହି ପ୍ରେମ ଫୁଲ ||୦||

ଆଣିବ କେ ଜଳ ସାଥେ
ଯାଇ ମାନସରୋବର ?
ବିଶ୍ରମିବ ନାହିଁ ପଥେ,
ପଡ଼ିବନି ଟୋପେ ନୀର !

(ପୂରା
   ବଲେବମ୍ ପରି ଆଣିବ)

ସେ ଜଳ ଏ ପ୍ରେମ-ଦେଶେ
ପଡ଼ିଲେ ମେଦିନୀ ତଳ
ଟୋପିଏରେ ଶୂନ୍ୟେ ହସେ
ଗୋଟିଏ ସେ ଫୁଲ ଡାଳ ||-୮

ଶିଢ଼ି ଥିଲେ ଯିବ ଚଢ଼ି,
ଡେଣା ଥିଲେ ଯିବ ଉଡ଼ି,
ଡାକିଲେ ଦି‘ ହାତ ଛାଡ଼ି
ସେ ଫୁଲ ପଡ଼ିବ ଝଡ଼ି ||”

(ଜଣେ ଯୋଗୀ ଏହିପରି ଏକ ପୋଥି ପଢୁଥିବା ଶୁଣି)

ପକ୍ଷୀ ଭାଳେ – “ଏତେ କାଳେ
ଜାଣି ଗଲି କଉଶଳ
ଜଳାଅନା ଯଉବନ,
ଫୁଟାଇବି ପ୍ରେମ-ଫୁଲ ||”-୯

ଉତ୍ତରକୁ ଗଲା ଉଡ଼ି
ଟିକି ଟିକି ଡେଣା ଝାଡ଼ି;
ବିନ୍ଦୁଏ ଚଞ୍ଚୁରେ ଭରି
ପକ୍ଷୀ ଆସିଲା ବାହୁଡ଼ି ||

ଥକି ଥକି ଆସେ ଡେଣା,
ତୃଷାତୁର, ବହେ ଝାଳ;
ନେଇନି ବିଶ୍ରାମ ଜମା,
ଢୋକିନି ଟୋପାକ ଜଳ ||୧୦

ତିନି ଦିନେ ଉଷା କାଳେ
ପ୍ରେମୀ ପାଶେ ମେଲି ପାଟି,
ଟଳିଲା ସେ ଭୂମି ତଳେ,
ଛାତି ତାର ଗଲା ଫାଟି ||

ଆକାଶେ ଫୁଟିଲା ଫୁଲ;
ପକ୍ଷୀ ତଳେ କଲବଲ;
ଉଡ଼ିଲା ସେ ଫୁଲ ଦେଖି,
ଝାଡ଼ି ଦେଲା ଫୁଲ ଡାଳ ||--୧୧

ପ୍ରେମୀ କହେ ବିଧାତା ହେ
ଗୁହାରି ଆଜି ଶୁଣିଲ;
ଯିବି ମୋ ପ୍ରେୟସୀ ପାଶେ,
ଏହି ତ ସେ ପ୍ରେମ-ଫୁଲ ||

ଖୋଲି ନାହିଁ ଆଖି ସେହି
ବିହଗ ଏ ମହୀ ପରେ;
ସେ ଦିନୁ ବିରହ ଦେଖି
ପ୍ରେମ-ପକ୍ଷୀ ଝୁରିମରେ ||-୧୨

ଲଲାଟେନ୍ଦୁ କବି
୦୧୭୦୨୦୨-୧୯୧୪